ତ୍ରିଲୋଚନ ମଥାନଙ୍କ

# କବିତା କହୁଛି କଥା

(ଶିଶୁ ଓ କିଶୋରଙ୍କ ପାଇଁ)



ତ୍ରିଲୋଚନ ମଥାନଙ୍କ

# କବିତା କହୁଛି କଥା

(ଶିଶୁ-କିଶୋରମାନଙ୍କ ପାଇଁ)



ପ୍ରକାଶିକା

**ଶ୍ରୀମତୀ ସସ୍ମିତା ମଥାନ**

ପଦ୍ମାଳୟ, ଏ/୨୧୧

କୋଏଲନଗର, ରାଉରକେଲା-୧୪

କବିତା କହୁଛି କଥା

# କବିତା କହୁଛି କଥା

# Kabita Kahuchhi Katha

ଲେଖକ : ତ୍ରିଲୋଚନ ମଥାନ

**Writer** : Trilochan Mathan

ଜନ୍ମସ୍ଥାନ :
ଗ୍ରା: ସାତଘରିଆ
ଓଲଭରା, କେନ୍ଦ୍ରାପଡ଼ା

**Native place :**
Vill - Satagharia
Olavar, Kendrapara

ଯୋଗାଯୋଗ :
ପଦ୍ମାଳୟ, ଏ/ ୨୧୧
କୋଏଲ ନଗର, ରାଉରକେଲା

**Present Address :**
Padmalaya
A/211, Koelnagar, Rourkela

ପ୍ରକାଶିକା :
ସସ୍ମିତା ମଥାନ
ପଦ୍ମାଳୟ, ଏ/୨୧୧, କୋଏଲନଗର,
ରାଉରକେଲା - ୧୪

**Publisher :**
Smt Sasmita Mathan
Padmalaya,
A/211, Koelnagar,
Rourkela - 14

ଅକ୍ଷର ସଜା ଓ ମୁଦ୍ରଣ :
ଭେଙ୍ଗ୍ରା ଗ୍ରାଫିକ୍ସ
ଶକ୍ତିନଗର, ରାଉରକେଲା

**Typeset & Printing :**
Bhengra Graphics
Shaktinagar, Rourkela.

ଚିତ୍ର ଓ ପ୍ରଚ୍ଛଦପଟ:
ମଧୁସ୍ମିତା ବାରିକ୍
ଭୁବନେଶ୍ୱର

**Illustration & Cover Design :**
Madhusmita Barik
Bhubaneswar.

ପ୍ରକାଶନ କାଳ :
ରଜ ସଂକ୍ରାନ୍ତି, ୨୦୦୮

**Publish on:**
Raja Sankranti, 2008

ମୂଲ୍ୟ : ଟ.୨୫/-
(ପଚିଶ ଟଙ୍କା ମାତ୍ର)

**Price** : Rs. 25/-
Rupees Twenty Five only

# ଅର୍ପଣ

ଓଡ଼ିଶାର ଯେଉଁ ସମ୍ମାନନୀୟ
ଶିକ୍ଷକ-ଶିକ୍ଷୟିତ୍ରୀ ଭାଇ-ଭଉଣୀମାନେ
ଛାତ୍ରଛାତ୍ରୀମାନଙ୍କୁ ପୁତ୍ରକନ୍ୟା ସଦୃଶ ସ୍ନେହ ଶ୍ରଦ୍ଧା ପୂର୍ବକ
ଶିକ୍ଷାଦାନ ଦେଇ ସେମାନଙ୍କର
ବୌଦ୍ଧିକ ଓ ସାମାଜିକ ଜ୍ଞାନର ଉନ୍ନତି କାମନା କରୁଛନ୍ତି,
ସେହି ମହାନ ସ୍ରଷ୍ଟାମାନଙ୍କ ହାତରେ
ଉକ୍ତ ଶିଶୁ-କିଶୋର ପୁସ୍ତକ 'କବିତା କହୁଛି କଥା'
ଅର୍ପଣ କରି ନିଜକୁ ଧନ୍ୟ ମନେ କରୁଛି ।

- ଲେଖକ

# ସୂଚୀପତ୍ର

# ରଖିବା ମା'ର ମାନ

ଆମେରେ ଓଡ଼ିଆ ଭାଷାଟି ବଢ଼ିଆ
ଶୁଣିବାକୁ ଲାଗେ ମିଠା
ସତେକି ନଡ଼ିଆ ଗୁଡ଼ ପୋର ଦିଆ
ସୁଆଦିଆ ମଣ୍ଡାପିଠା ।
ଓଡ଼ିଶା ରାଇଜେ ଜନମ ଆମର
ଆମେ ଭାଗ୍ୟବାନ ପିଲା
ଜାତି ଧର୍ମ ଭୁଲି ଆପଣେଇ ନେଉ
ହେଉପଛେ ଯେଉଁ ଜିଲ୍ଲା ।
ସମାଜେ ଅଛନ୍ତି ଜାତି ଜାତି ଲୋକେ
ଦେଶପାଇଁ ଦରକାରୀ
ଯେପରି ଶରୀରେ ଭିନ୍ନ ଭିନ୍ନ ଅଂଗ
ଆମ ପାଇଁ ଉପକାରୀ ।
ଓଡ଼ିଶା ମା'ର ଆମେରେ ସନ୍ତାନ
ମନରେ ଗରବ ଆସେ
ଦେଶ ବିଦେଶରେ ଆମରି ସୁନାମ
ମଲ୍ଲୀ ଫୁଲ ପରି ବାସେ ।
ସୁଜଳା ସୁଫଳା ପାହାଡ଼ ବନାନୀ
ପ୍ରକୃତିର ମହାଦାନ
ଉତ୍କଳ ମା'ର ଜୟଗାନ କରି
ରଖିବା ତାହାର ମାନ ।

***

# ଗୋଟିଏ ଆମ୍ଭ ଜାତି

ଜାତୀୟ ଝଣ୍ଡା ତ୍ରିରଙ୍ଗା ଝଣ୍ଡା
ଉଡୁଛି ଫର ଫର
ଭାରତ ମାତା ସ୍ୱାଧୀନ ଗାଥା
ଭରିଛି ତା'ର ସ୍ୱର ।



ଜୟ ଭାରତ ଜୟ ଭାରତ
ଜୟ ଭାରତ ମା'
ସୁଜଳା ସୁଫଳା ଶିଳ୍ପମୟୀ
ହସେ ସହର ଗାଁ
ସାରା ଜଗତେ ରହିଛି ଟେକ
ପିନ୍ଧି ଗୌରବ ହାର ।

ଏହି ମାଟିରେ କେତେ ଯେ ବୀର
ଲଢ଼ି ସହିଦ ହେଲେ
ଏହାରି ହିତେ କରିକି ସେବା
କେତେ ଯେ ରକ୍ତ ଦେଲେ
ପୂଣ୍ୟ ଭୂମି ଭାରତ ଭୂମି,
କିଏବା ସରି ତା'ର ।



ଜନମି ଲାଲ ବାଲ ପାଲ
ଆମକୁ କଲେ ଋଣୀ,
ବାପୁଜୀ ହେଲେ ମହାମାନବ
ଅହିଂସା ବୀଜ ବୁଣି
ସବୁ ଧରମେ ଗଢ଼ା ଭାରତ
ନାହିଁ ଆପଣା ପର ।



ଏହି ମା'ର ସନ୍ତାନ ଆମେ
ଗୋଟିଏ ଆମ ଜାତି
ଆମେରେ ସବୁ ଭାରତବାସୀ
ରହିଛି ଆମ ଖ୍ୟାତି
ଜୟ ଭାରତ ଜୟ ଭାରତ
ଗୋଟିଏ ଆମ ସ୍ୱର ।

***

# ଜଣେ ଏକା ମହାଦାନୀ



ଧନ୍ୟ ହେ ଈଶ୍ୱର ଗଢ଼ିଛ ଧରାକୁ
କେ ପାରିବ ତାକୁ କଳି
ତୁମରି ଆଦେଶେ ନିତି ସୂର୍ଯ୍ୟ ଚନ୍ଦ୍ର
ଆଲୋକ ଦିଅନ୍ତି ଭରି ।



ଶୂନ୍ୟ ମଣ୍ଡଳରେ କୋଟି କୋଟି ତାରା
ଚାହିଁଛନ୍ତି ମିଟି ମିଟି
କଇଁଫୁଲ ପରି ଦିଶନ୍ତି ସୁନ୍ଦର
ନୀଳ ଆକାଶରେ ଫୁଟି ।



ଦରିଆ ଗଢ଼ିଛ ନଈ ବି ଗଢ଼ିଛ
ଗଢ଼ିଛ ପାହାଡ଼ ଭୂଇଁ
ସବୁଜ ବନାନୀ ଉଚ୍ଚ ପରବତ
ଚାହିଁଛନ୍ତି ମଥା ନଇଁ ।



ଜାତିଜାତି ପଶୁ ପକ୍ଷୀ ଜଳଚର
ବିରାଟ ଚିଡ଼ିଆଖାନା
ସଭିଙ୍କ ପେଟକୁ ଯୋଗାଇ ଦେଇଛ
ଖାଇବାକୁ ନିତି ଦାନା ।

ପବନ ବହୁଛି ଋତୁ ବଦଳୁଛି
ହସୁଥାଏ ଫୁଲଫଳ
ଜୀବ ଜଗତର କରୁଛ ମଙ୍ଗଳ
ପରଷି ବରଷା ଜଳ ।





ଆମରି ହିତରେ ସଭିଏଁ ଖଟନ୍ତି
ତୁମରି ଆଦେଶ ମାନି
ହେ ପରମ ପିତା ଜଗତକରତା
ତୁମେ ଏକା ମହାଦାନୀ ।

***

# ସମାଜସେବା ଈଶ୍ୱରସେବା

ଟିକିଟିକି ଡେଣା ଟିକି ମହୁମାଛି
ଫୁଲରୁ ଫୁଲେ ବସି,
ଭରିକି ଶୁଣ୍ଢ ଆନନ୍ଦ ମନେ
ନିଅନ୍ତି ରସ ଶୋଷି ।
ସଞ୍ଚି ରଖନ୍ତି ମଧୁ ରସକୁ
ଆମରି ହିତ ପାଇଁ
କରନ୍ତି ସେବା ସମାଜ ପାଇଁ
ମନେ ଗରବ ନାହିଁ ।





ଟିକି ଜୀବଟି କରଇ ସେବା
ନିଜ ଧରମ ପାଳି
ନିଜେ ନ ଖାଇ ଦିଅନ୍ତି ବାଣ୍ଟି
ଆପଣା ସୁଖ ଟାଳି ।




ସମାଜସେବା ଈଶ୍ୱରସେବା
ଅଟଇ ମହାପୁଣ୍ୟ
ଦୁଃଖ ସହିକି କରିଲେ ତ୍ୟାଗ
ଜୀବନ ହୁଏ ଧନ୍ୟ ।



ଆମେରେ ସବୁ ମଣିଷ ଜାତି
ତାଙ୍କଠୁ ବୁଦ୍ଧି ବେଶି
ସମାଜ ହିତେ କରିବା କାମ
ସଭିଏଁ ମିଳିମିଶି ।

***

# ଆମ ବଂଧୁ ପଶୁପକ୍ଷୀ



ଗେଣ୍ଡାଳିଆ ଗେଣ୍ଡା ଗିଳେ
ମାଛପ୍ରିୟ ବଗ
ବିରାଡ଼ିକୁ ମୂଷା ସ୍ୱାଦ
ସାପ ଗିଳେ ବେଙ୍ଗ ।





ବିଲୁଆ ଶାଗୁଣା କାଉ
ଖାଇ ସଢ଼ା ମାଂସ
କରୁଛନ୍ତି ବୁଲି ସଫା
ଆମ ପରିବେଶ ।





କୁକୁର ଆମରି ବଂଧୁ
ଗାଁ ସାରା ବୁଲି
ଅଇଁଠା କଣ୍ଟାକୁ ଖାଇ
ଯାଏ ସେହି ଫୁଲି ।





ଜାତି ଜାତି ପଶୁପକ୍ଷୀ
ବଡ଼ ଉପକାରୀ
ଜନ୍ମ ତାଙ୍କ ଆମ ହିତେ
ଦିଅନାହିଁ ମାରି ।





ଜଳସ୍ଥଳ ବାୟୁ ଯେବେ
ରହେ ପରିଷ୍କାର
ପରିବେଶ ସୁସ୍ଥ ରହି
ରୋଗ କରେ ଦୂର ।



***

# ଅଜା ଆଈଙ୍କ ସୁଆଙ୍ଗ

ଆଈଙ୍କର ବାଳ ଧଳା ଫରଫର
ଅଜାଙ୍କର ତହୁଁ ବଳି,
ପାକୁଆ ପାଟିକୁ, ମଥାରେ ଚନ୍ଦନ
ନିତି ଦୁହିଁଙ୍କର କଳି ।
ଗଳାରେ ତୁଳସୀ ମାଳି,
ଅଜା ଆଈଙ୍କର ସୁଆଙ୍ଗ ଦେଖିଲେ
ପିଲାଏ ମାରନ୍ତି ତାଳି ।









ଅଜାଙ୍କ କଥାରେ ଆଈଙ୍କ ଆଖିରୁ
ବୋହି ପଡୁଥାଏ ଲୁହ
ହସି ଦେଇ ଅଜା 'ରାମ' 'ରାମ' କହି
ବୁଲାଇ ଦିଅନ୍ତି ମୁହଁ
ଆଈଙ୍କର ଉଠେ କୋହ,
କୁନି ଆସିକରି ଲୁହ ପୋଛିଦିଏ
ଆଈଠାରେ ଭାରି ସ୍ନେହ ।

କୁନାଟା ଆମରି ସହିପାରେ ନାହିଁ
ଦୁହିଙ୍କର କଳି ଦେଖି
କହିଲା ଥାନାରେ କରିବ ଗୁହାରି
ଦୁହିଙ୍କ ବିରୁଦ୍ଧେ ଲେଖି
ନିଜେ ହେବ ତା'ର ସାକ୍ଷୀ
କଚେରୀକୁ ଦୁହେଁ ଦଉଡ଼ି ଦଉଡ଼ି
ବୁଝିବ ମଜାକୁ ଚାଖି ।









ସଂଜ ଆସିଗଲା ଅଜାଆଈ ଦୁହେଁ
ଅଗଣା ପିଣ୍ଡାରେ ବସି
ନାତି ନାତୁଣୀଙ୍କୁ ଶୁଣାଇଲେ ଗପ
ପାକୁଆ ପାଟିଏ ହସି
କୁନା ବସିଥିଲା ରୁଷି
ମା' ଆଣି ଦେଲେ ଗରମ ପକୋଡ଼ି
ସଭିଏଁ ହୋଇଲେ ଖୁସି ।

***

# କ୍ଷେତରେ ଫଳେ ସୁନା

ହଳ କରିଯିବେ ବଳଦ ଯୋଡ଼ିକ
ଜୁଆଳି ପଡ଼ିଛି କାନ୍ଧରେ
ଖିରାମାଡ଼ି ଆସେ ଡେରି କରନାହିଁ
ଲଙ୍ଗଳ ଦଉଡ଼ି ବାନ୍ଧରେ
ସଂଗରେ ମଈକୁ ଧର
ପାଗଯୋଗ ଦେଖି ଚାଷ କରୁଥିଲେ
ଭରିବ ଭଣ୍ଡାର ଘର ।







ଚାଷେ ତରତର ବଣିଜେ ମଠ
ପୂରୁବ ପୁରୁଷ ବାଣୀ,
ଖରା ବରଷାରେ ଭୁଲି ଯିବା ନାହିଁ
ସଂଗରେ ନେବାକୁ ପାଣି
ରୁଆ ଧାନ ସଦା ଥୁଆ
ଦ୍ୱିଗୁଣ ଚଷିଲେ ଚାରିଗୁଣ ମିଳେ
ଏକଥା  ନୁହଁଇ ନୂଆ ।

ବନ୍ଧାପଡ଼ ନାହିଁ ଅପର ପାଖରେ
ଜମିଥିଲେ ଦୁଇ ମାଣ,
ସୁଖରେ ଚଳିବ ଛୋଟ ପରିବାର
ମନବଳ ଥିଲେ ଟାଣ
ଜାଣିନାହୁଁ କିରେ ମୁନା,
ଚଷାପୁଅ ପାଇଁ ମାଟି ମା' ହସେ
କ୍ଷେତରେ ଫଳଇ ସୁନା ।





ଲାଲବାହାଦୁର କହିଥିଲେ ଦିନେ
'ଜୟ କିଶାନ' ଭାଇ
ଭାରତ ମାତାର ଯୋଗ୍ୟ ସନ୍ତାନ
ତୁମ ପରି କେହି ନାହିଁ
ପେଟକୁ ଦେଇକି ଦାନା
ପ୍ରଗତି ରଥକୁ ଟାଣି ନେଇ ଚାଲ
ଉଡ଼ାଇ ବିଜୟ ବାନା ।

***

# ସ୍କୁଲେଇ ଆଈ

ଭାରି ଭଲ ଆମ ସ୍କୁଲେଇ ଆଈ
ଗୁଆ ଗୁଣ୍ଡି ମିଶା ପାନକୁ ଖାଇ
ବୁଲି ଆସେ ଘର ଘର
ବଙ୍କୁଲି ବାଡ଼ିକୁ ପାଦରେ ଚପଲ
ଧଳାବାଳ ଫରଫର ।



ଆଖିରେ ଚଷମା ପାକୁଆ ପାଟି
ନଇଁ ନଇଁ ଚାଲେ ଗୋଡ଼କୁ ଛାଟି
ସଦା ମନ ଗାଁ ଠାଇଁ,
ଦାଣ୍ଡରେ ଦେଖିଲେ ଖେଳୁଛନ୍ତି ପିଲା
ଡାକି କହେ ପଢ଼ ଯାଇଁ ।



ଦେଖିଲେ ପଡ଼ିଛି ଇଟାପଥର
କଦଳୀ ଚୋପାକୁ ବଡ଼ ନଜର
ଅନାବନା କଣ୍ଟାଗଛ,
ହସି ହସି ଆଈ ସଫା କରିଦିଏ
ସବୁ କାମ କରି ପଛ ।



ଦେହ ପା' କଥା ବୁଝେ ପଚାରି
ନ ଥାଏ କାହାକୁ ଡର,
ସଭିଙ୍କ ଦୁଃଖରେ ଦୁଃଖୀ ହୋଇଥାଏ
ନ ଭାବି ଆପଣା ପର ।

ବଡ଼ ଉପକାରୀ ମଣିଷ ସେହି
ତା ପରିକା ନାହିଁ ଗାଁ ରେ କେହି
ବିପଦ ଆପଦ କାଳେ
ସଭିଙ୍କ ହିତରେ ଦିଅଁଙ୍କ ପାଖରେ
ଘିଅ ଦୀପ ବସି ଜାଳେ ।

***

# ଭୋଦୁଅ ଖରା ନ ଦିଏ ଧରା

ଭୋଦୁଅ ମାସେ ନୀଳ ଆକାଶେ
ଧଳା ବଉଦ ଖେଳେ
ଛପି ଛପିକା ବିଜୁଳି ହସେ
ଦୂର ପାହାଡ଼ ତଳେ ।





ଶୀତଳ ଜଳ ଦିଏ ପରଷି
ବରଷା ରାଣୀ ହସି
ସୋନୁ ଆମର ମାରଇ ତାଳି
ଦାଣ୍ଡ ଦୁଆରେ ବସି ।

ଭୋଦୁଅ ଖରା ନ ଦିଏ ଧରା
ଆସିକି ଲୁଚିଯାଏ
ଗୋରୁ ଗୋଠରେ ପଦିଆ ବସି
ଆନନ୍ଦେ ଗୀତ ଗାଏ ।





ପାଟ ପୋଖରୀ ସୁନ୍ଦର ଦିଶେ
କଇଁ କମଳ ଭରି
ମନ୍ଦାର ଚମ୍ପା ଟଗର ଫୁଟି
ନିଅନ୍ତି ମନ ହରି ।

ଭାରି ସୁନ୍ଦର ଦିଶଇ କ୍ଷେତ
ସବୁଜ ରଙ୍ଗେ ଭରା
ସଜାଇ ରୂପ ହସି ହସାଏ
ଏହି ଆମରି ଧରା ।



***

# ଅ' ପରେ ଆ'

ଅ' ପରେ ଆ' ହୁଏ ଦିନ ପରେ ରାତି,
ସୁଖ ଦୁଃଖ ଦୁଇ ଭାଇ ଦମ୍ଭ ରଖ ଛାତି ।
ଧନବଳ ବାହୁବଳ ଆସେ ପୁଣି ଯାଏ
ଭଲ କାମ ଭଲ ଗୁଣ ସବୁଦିନ ଥାଏ ।





ନୀଚ ବୁଦ୍ଧି ହରିନିଏ ଧୀରେଧୀରେ ଜ୍ଞାନ
ଦୟା କ୍ଷମା ସ୍ନେହ ଥିଲେ ବଢ଼େ ତା'ର ମାନ ।
ଅହିଂସା ଯାହାର ସାଥୀ ନାହିଁ ତା'ର ଭୟ
ଯେଉଁ କାମେ ଲାଗିପଡ଼େ ହୁଏ ତା'ର ଜୟ ।



ପରଧନ ନିଆଁ ସମ ଜାଳେ ନିଜ ଘର
ଦେଶଧନ ରକ୍ଷା କର ନ ଭାବି କି ପର ।
ସୁସ୍ଥ ଥିଲେ ଦିଶେ ଦେହ ଫୁଟାଫୁଲ ପରି
ମନ ଥିଲେ ନିରିମଳ ସୁଖ ଦିଏ ଭରି ।



ପରନିନ୍ଦା ପର କଥା ଦୁଃଖ ଆଣେ କିଣି
ସ୍ନେହ ପ୍ରୀତି ମମତାରେ ସବୁ ପାର ଜିଣି ।
ସତକୁ ଆଦର କଲେ ସାଧୁତାରେ ଗଣା
ଜୀବନର ଚଲାପଥେ ହେବା ନାହିଁ ବଣା ।

***

# ଆମେ ଭାରତବାସୀ

ଗୋଟିଏ ସୂର୍ଯ୍ୟ, ଉଦୟ ହେଲେ ହସି ଉଠଇ ଧରା
ଜହ୍ନକୁ ଦେଖି ଡରେ ଅନ୍ଧାର ଆଉ କୋଟିଏ ତାରା ।

ଗୋଟିଏ ଦେଶ ଭାରତବର୍ଷ କେତେ ଯେ ଧର୍ମ ଜାତି
ଭାଷା ଅନେକ ଗୋଟିଏ ଲକ୍ଷ୍ୟ ରହିଛି ଆମ ଖ୍ୟାତି ।





ରୂପ ଅନେକ ଆମେ ମଣିଷ ନୁହଇଁ ରକ୍ତ ଭିନ୍ନ
ମହତ କର୍ମ କରିକି ଯିବା ଲିଭିବ ନାହିଁ ଚିହ୍ନ ।

ଗୋଟିଏ ମନ୍ତ୍ର ଅହିଂସା ଶାନ୍ତି ବାପୁଜୀ ତୁଣ୍ଡେ ଧରି
ଭାରତ ମାଟି କଲେ ସ୍ୱାଧୀନ ସକଳ ଦୁଃଖ ହରି ।

ଗୋଟିଏ ମା'ର ସନ୍ତାନ ଆମେ ଶ୍ରମିକ ମୂଲିଆ ଚଷା
ପର ଅପର ନାହିଁ ଆମର ଆମେ ଭାରତବାସୀ ।

***

# ବରାଖିଆ ନିଶା

ମାଇଁ ବାନ୍ଧୁଥିଲେ ଗାଇକୁ
ମାମୁଁ ଡାକଦେଲେ ଆଇକୁ
କଅଁଳା ବାଛୁରୀ ଦଉଡ଼େ ଦାଣ୍ଡରେ,
ଡାକିଦିଏ ଟିକେ ଭାଇକୁ ।





ଭାଇ ଯାଉଥିଲେ ବଜାର
ଆଣିବେ ଦବେଇ ଅଜାର
ମାଉସୀ କହିଲା ଭୁଲିଯିବନାହିଁ
ଆଣିବାକୁ ବହି ରୋଜାର ।

ବାପା ଆସିଗଲେ ହାଟରୁ
କିଣିକି ଇଲିଶ ଘାଟରୁ
ପାଠପଢ଼ା ଛାଡ଼ି କୁନି ଦଉଡ଼ିଲା,
ପଡ଼ିଲା ଗଡ଼ିକି ଖଟରୁ ।





ତଳେ ଗଡ଼ି ଗଡ଼ି କାନ୍ଦିଲା
ଲୁହରେ ଚଟାଣ ଭେଦିଲା
ବାପା ଧାଇଁ ଆସି ଡାକିଲେ କୁନିଲୋ,
ଧଡ଼ ପଡ଼ ହୋଇ ଉଠିଲା ।

ବାପାଙ୍କ ହାତକୁ ଚାହିଁଲା
ପୁଡ଼ିଆ ଦେଖିକି ହସିଲା
ହାତ ମୁହଁ ଧୋଇ ଆନନ୍ଦ ମନରେ,
ବରା ଆଳୁଦମ ଖାଇଲା ।



***

# କି କାଠ ପଥରୁ ଚନ୍ଦନ ଜାଣି



ଅଳସୀ କହିଲା ଦିଏଲୋ ପାଣି
କଳସୀ କହିଲା ପିଇନେ ଛାଣି
ମାନସୀ କହିଲା ଛି' ଲୋ ଭଉଣୀ,
କି କାଠ ପଥରୁ ଚନ୍ଦନ ଜାଣି ।

ଆଲୋକ କହିଲା ରଜନୀ କାହିଁ
ରଜନୀ ଡରରେ ଲୁଚିଲା ଯାଇଁ
ଦୂର ପାହାଡ଼ରୁ ଶବଦ ଆସିଲା
ଲାଜକୁଳୀ ହେଲି ତୋହରି ପାଇଁ ।



ବାଦଲ କହିଲା ଗ୍ରୀଷମ ଭାଇ
ଜଳୁଛି ଧରଣୀ ତୁମରି ପାଇଁ
ତୋ ଦିନ କାଳ ସରିସରି ଆସେ,
ଆଉ କେଇ ଦିନେ ଲୁଚିବୁ ଯାଇଁ ।





ଶୁଣୁଥିଲା ଶୀତ ପାହାଡ଼େ ବସି
ଧୀରେ ପାଦ ଚାଳି ଆସିଲା ପଶି
ବିଚରା ବରଷା ଲାଜ ଲାଜ ହୋଇ,
ଲୁଚାଇଲା ମୁହଁ ମୁରୁକି ହସି ।



***

# ଜୀବନକୁ ଗଢ଼ିବା

ଟିକି ମଂଜି ଗଛ ହୋଇ ଫୁଲ ଫଳ ଧରି
ଜୀବନକୁ ବଳି ଦିଏ ଆମ ସେବା କରି ।





ଶିଶୁଟିଏ ଜନ୍ମ ନେଇ ମା' କୋଳେ ବଢ଼େ,
ପାଠ ପଢ଼ି ବଡ଼ ହୋଇ ଜୀବନକୁ ଗଢ଼େ ।



ମାଟି ମା' ଅନ୍ନ ଜଳ ପିତା ମାତା ସ୍ନେହ
ଖରାବର୍ଷା ପବନରେ ଗଢ଼ା ଆମ ଦେହ ।



ଜୀବନଟି ମୂଲ୍ୟବାନ ଈଶ୍ୱରଙ୍କ ଦାନ
ନିଜ ବୁଦ୍ଧି ଜ୍ଞାନ ବଳେ ଆମେ ବଳୀୟାନ ।



ସମାଜର ହିତପାଇଁ କରିଯିବା କାମ
ଫୁଲପରି ମହକାଇ ରଖିଯିବା ନାମ ।

***

# ଟିକି ପିଲାଟିର ଭଲ ବୁଦ୍ଧି

ଟିକି ପିଲାଟିଏ ମୁହିଁ
ଆସିଅଛି ଧରାକୁ,
ଦିନୁ ଦିନ ବଢ଼େ ଖାଇ
ଶୀତ ବର୍ଷା ଖରାକୁ।

ଟିକି ଟିକି ହାତ ପାଦ
ନିତି ଖେଳି ବୁଲଇ
ମା' ପାଇଁ ଗରବରେ
ଛାତି ମୋର ଫୁଲଇ।





କଅଁଳିଆ ହାତେ ଧରି
ପଢ଼େ ଛବି ବହିକୁ
ଗୁଲୁଗୁଲୁ କଥା କହି
ବାନ୍ଧିରଖେ ସଭିଙ୍କୁ।

ଛୋଟ ଛୋଟ ଦୁଇ ଆଖି
ଛୋଟ ଦୁଇ କାନରେ
ଦେଖେ ସବୁ ଶୁଣେ ସବୁ
ଈଶ୍ୱରଙ୍କ ଦାନରେ।

ଗୁରୁମା' ଭାରି ଭଲ
ଖୁସିଲାଗେ ଦେଖିଲେ
ଭଲ ଲାଗେ ଶୁଣିବାକୁ
ମିଠା ଗପ କହିଲେ ।

ଆଜି ସିନା ଟିକି ପିଲା
ଦିନେ ବଡ଼ ହୋଇବି
ପାଠପଢ଼ି ଜ୍ଞାନ ବଳେ
ଦୁନିଆକୁ ଜିତିବି ।



***

# ବରଷା ରାଜା ବଜାଏ ବାଜା

ବରଷା ରାଜା ବଜାଏ ବାଜା
ନୀଳ ଆକାଶେ ଭାସି,
ପରଷି ଦିଏ ଶୀତଳ ଜଳ
ଧରା ଧାମକୁ ଆସି ।





ବିଜୁଳି ଖେଳେ ବଉଦ ତଳେ
ଚଢ଼ି କାଳିଆ ହାତୀ
ବାଣ ଫୁଟାଇ କମ୍ପାଇ ଦିଏ
ଥରି ଉଠଇ ଛାତି ।



ବିଲ ପାହାଡ଼ ବଣ ଜଙ୍ଗଲ
ଧୂଆଁ ପରିକା ଦିଶେ
ଦୂରୁ ଦେଖିଲେ ଧରଣୀ ରାଣୀ
ଆକାଶେ ଯାଇଁ ମିଶେ ।



ଗାଁ ଦାଣ୍ଡଟା ଦିଶଇ ନାଳ
ବରଷା ପାଣି ଭରି,
ମନ ଆନନ୍ଦେ ଖେଳନ୍ତି ପିଲେ
କାଗଜ ଡଙ୍ଗା ଧରି ।



ତୁହାକୁ ତୁହା ହେଲେ ବରଷା
ମାଡ଼ି ଆସଇ ବଢ଼ି
ଖେଳ ପଡ଼ିଆ ଗାଡ଼ିଆ ବିଲ
ଦିଶଇ ଏକା ପରି ।



ବରଷାକାଳ ଚଷାକୁ ହିତ
ବିତରି ଦିଏ ସୁଖ ।
ଅତି ବରଷା ଭାରି ବିପଦ
ଡାକି ଆଣଇ ଦୁଃଖ ।

***

# ବଡ଼ି ଚୂରାକୁ ଆମ୍ବ ଚଟଣି

ଉଦୁଉଦିଆ ବଇଶାଖରେ
ତହଲ ବିକଳ ଧରା
ସୂରୁଜ ଦେବ ଢ଼ାଳି ଦିଅନ୍ତି
ମଥା ଉପରେ ଖରା ।





ଝଂଜା ପବନ ଆସଇ ମାଡ଼ି
ଘରେ ପସନ୍ତି ଡରି
ଅଂଶୁଘାତକୁ ସହି ନ ପାରି
ପଡ଼ନ୍ତି କେତେ ଟଳି ।



ବାପା ବିଲରେ କରନ୍ତି ଚାଷ
ବଡ଼ି ସକାଳୁ ଧାଇଁ
କ୍ଷେତ ହସିଲେ ହସନ୍ତି ବାପା
ଆମରି ପେଟ ପାଇଁ ।



ଖରା ତେଜରେ ଶୁଖିଲା ମୁହେଁ
ଆସିଲେ ଫେରି ଘର
ମା' ଆମର ରୋଷେଇଶାଳେ
ହୁଅନ୍ତି ତରବର ।



ଗାଧୁଆ ସାରି ପୋଖରୀ ଘାଟୁ
ବାପା ଆସନ୍ତି ଧାଇଁ
ଶାଗ ପଖାଳ ବାଢ଼ିକି ମା'
ବାଟକୁ ଥା'ନ୍ତି ଚାହିଁ ।





ବଡ଼ିଚୂରାକୁ ଆମ୍ବ ଚଟଣି
ଗୋଟା କଲରା ଭଜା
ଖାଇ ସାରିକି କୁହନ୍ତି ବାପା
ଲାଗିଲା ଭାରି ମଜା ।

***

# କଳି କଲେ ନିଜର କ୍ଷତି

ବଗ ନିଜ ରୂପପାଇଁ ମନେ ଗର୍ବ କରି
ଚିଲ ସଂଗେ କଲା କଳି ସାଙ୍ଗସାଥୀ ଧରି ।
ଚିଲ କହିଲାରେ ଭାଇ କରୁ କିଆଁ କଳି
କଳି କଲେ ନିଜ ଦେହ ରାଗେ ଯିବ-ଜଳି ।

ତୋ ରଂଗଟି ଧଳା ହେଲେ ମୋ ରଂଗ ମାଟିଆ
ସଭିଙ୍କର ରୂପ ଭିନ୍ନ କେହି ନୁହେଁ ଛୋଟିଆ ।
ରୂପ ସିନା ଭିନ୍ନଭିନ୍ନ ପେଶା ଆମ ଏକା
ଆତ୍ମ ଗର୍ବେ କରୁ କଳି ଯେଣୁ ତୁହି ବୋକା ।



ଭଗବାନ ଗଢ଼ିଛନ୍ତି ଆମ ପାଇଁ ମାଛ
ରହିବାକୁ ବସାବାନ୍ଧି ଗଢ଼ିଛନ୍ତି ଗଛ ।
ଲମ୍ବା ଲମ୍ବା ଗୋଡ଼ ତୋର ଲମ୍ବା ବେକ ଥଣ୍ଟ
କେଉଁ ଗୁଣେ ତୁ ଅଧିକ ଦେଖାଉଛୁ ଆଣ୍ଟ ।

ଆମେ ସବୁ ପକ୍ଷୀଜାତି ଏକଥାକୁ ଭୁଲି
ଭାଇ ହୋଇ ଭାଇ ସଂଗେ ଲଗାଉଛୁ କଳି ।
କଳିଗୋଳ ଭୁଲିଯାଇଁ ନିଜ କାମ କର
ସମୟଟା ଚାଲିଯାଏ ସେ ନୁହେଁ କାହାର ।





ଚିଲକଥା ଶୁଣି ବଗ ମନରେ ଭାବିଲା
କଳିରେ ସମୟ ଦେଇ ପେଟ ନ ଭରିଲା ।

***

# ଢିଙ୍କି ଗଲାଣି ବାଙ୍କି

ଢିଙ୍କିରେ ଢିଙ୍କି ଗଲୁଣି ବାଙ୍କ
ଖାଇ ଖାଇକି ଖରା,
ଶୋଇ ରହିଛୁ ବାଡ଼ି ପିଣ୍ଡାରେ
ଦେହରେ ଉଈ ଭରା ।



କୁମ୍ଭୀର ପରି ଦେହଟି ତୋର
ଦେଖିଲେ ଲାଗେ ଦୁଃଖ
ଡେଣା ଦୁଇଟା ଭାଙ୍ଗି ପଡ଼ିଛି
ବାଙ୍କି ଯାଇଛି ମୁଖ ।





ତୋ ବେଳକାଳ ଯାଇଛି ଚାଲି
ଆସି ବିଜ୍ଞାନ ବଳ,
ତୋହରି ଜାଗା ବସିଲା ମାଡ଼ି
ଧାନ କୁଟିବା କଳ ।

ମା' ମାଉସୀ କଲେ ଆରାମ
ଗଲେଣି ତୋତେ ଭୁଲି
ହାଣି କାଟିକି ଦେହକୁ ତୋର
ଜାଳି ବସନ୍ତି ଚୁଲି ।

ସହରୀ ଲୋକେ ଜାଣନ୍ତି ନାହିଁ
ତୋହରି ସେବା ଦାନ
କିପରି ତୁହି ଚାଉଳ କରୁ
ସମାରେ କୁଟି ଧାନ ।



ଗାଁ ଗଣ୍ଡାରେ ଆଜି ବି ତୋର'
ଭୁଲି ନାହାନ୍ତି ନାମ
ଆଦର କରି କେବେ କେମିତି
କରାଉଛନ୍ତି କାମ ।



ମଣିଷ ବଳ ବିଜ୍ଞାନ ବଳ
ନୁହଇ ଏକା ପରି
ହାତ ଗୋଡ଼ରେ କରିଲେ କାମ
ରୋଗ ପଳାଏ ଡରି ।

***

# ଅଜାଙ୍କ ମୁଢ଼ିଖିଆ ନିଶା

ବରଷା ସଂଜେ ପିଣ୍ଡାରେ ବସି
ଅଜା ଛାଡ଼ିଲେ ରଡ଼ି,
କଲେ ବରାଦ ଭାରି ସୁଆଦ
ନଡ଼ିଆ ସଂଗେ ମୁଢ଼ି ।





ଆଈ ମା' ଆସି ମୁରୁକି ହସି
କହିଲେ ଲାଜ ନାହିଁ
ଦାନ୍ତ ତୁମରି ସବୁ ହଲୁଛି
କିପରି ଦେବ ଖାଇ ।



ରାଗିକି ଅଜା କହିଲେ ଦିଅ
ମୁଢ଼ି ସହିତ ଚଣା
ଚୋବାଇ ଦେବି ଏହି ଦାନ୍ତରେ
ଦେଖିଲେ ହେବ ବଣା ।



ମୁଢ଼ି ସହିତ ନଡ଼ିଆ ଚଣା
ଆଈମା ଦେଲେ ଥୋଇ
ମୁଠାକୁ ମୁଠା ଖାଇଲେ ଅଜା
ହାତ ମୁହଁକୁ ଧୋଇ ।

ଗୋରୁଙ୍କ ପରି କଲେ ପାକୁଳି
ଆଖି ଦୁଇଟା ବୁଜି
ଠାଏ କରି ଟାଣୁଆ ଗୋଡ଼ି
ଦାନ୍ତରେ ଗଲା ବାଜି ।





ଗଳି ପଡ଼ିଲା ଦାନ୍ତ ଦୁଇଟା
ଆହାଃ କହିଲେ ଅଜା
ବୁଢ଼ା ବୟସେ ଚଣା ଚୋବାଇ
ପାଇଲେ ତା'ର ମଜା ।



ଆଈ କହିଲେ ନ ମାନି କଥା
ଖାଇଲ ମୁଢ଼ି ଚଣା,
ଥିଲା ତୁମର ବତିଶି ଦାନ୍ତ
ଦୁଇଟା ହେଲା ଊଣା ।

***

# ପରିବେଶ ବନ୍ଧୁ ଶାଗୁଣା



ପରିବେଶ ବନ୍ଧୁ ଶାଗୁଣା
ଦୂର ଆକାଶରୁ ନଜର ରଖନ୍ତି
ଆମ ବଣ ଭୂଇଁ ଅଗଣା ।



ଦେଖିଲେ ମଲା ମଇଁଷି ଗାଈ
ଆକାଶୁ ଆସନ୍ତି ବେଗରେ ଧାଇଁ
ପଚାସଢ଼ା ଶବ ମାଂସ ଖାଇଖାଇ,
କରନ୍ତି ପେଟକୁ ଭରଣା ।





ଧୀରେ ତାଙ୍କ ବଂଶ ଯାଆନ୍ତି ବୁଡ଼ି
ଥୋକେ ମରିଗଲେ ବାତ୍ୟାରେ ପଡ଼ି
ମଢ଼ା ଖାଇବାକୁ ଶାଗୁଣା ଅଭାବ,
- କାହାକୁ ନୁହଇ ଅଜଣା ।



ଉଚ୍ଚ ଉଚ୍ଚ ଗଛ ଦିଅନ୍ତି କାଟି
ଶମଶାନ ସବୁ ଗଲାଣି ହଟି
ରହିବା ଖାଇବା ହେବାରୁ ଅଭାବ,
ଭୋଗୁଛନ୍ତି ନିତି ଯାତନା ।

ସବୁ ପକ୍ଷୀଜାତି ଆମରି ମିତ
ଶାଗୁଣା କରନ୍ତି ଅଧିକ ହିତ
ଜଳ ସ୍ଥଳ ବାୟୁ କରନ୍ତି ସଫାଇ
ନ ନେଇ ଆମଠୁ ପାଉଣା ।



ଡାଇନାସୋର ପରି ଦିନେ ଶାଗୁଣା
ପକ୍ଷୀ ସମାଜରୁ ହୋଇବେ ଊଣା
ତାଙ୍କ କଥା ଆମେ ପଢ଼ିବା ବହିରେ,
ନ ମିଳିବ ସେବା ମାଗଣା ।

***

# କେହି ନୁହେଁ ବଡ଼ ସାନ



ଗୁଣପାଇଁ ଧନ ନୁହେଁ ଦରକାର
ଦରକାର ସାଧୁ ସଂଗ,
ରୂପ ପାଇଁ ନୁହେଁ ଅଳଙ୍କାର ଲୋଡ଼ା
ଜ୍ଞାନ ହିଁ ଉତ୍ତମ ଅଙ୍ଗ ।

ଟଙ୍କା କିଣେ ଭୂମି ସୁନା ରୂପା ହୀରା
ଜ୍ଞାନ କିଣେ କୋଟି ମନ,
ଯା' ହୃଦୟେ ଭରା ଦୟାକ୍ଷମା ଶାନ୍ତି
ସେହି ହିଁ ମହତ ଜନ ।

ଆମେ ତ ମାନବ ରକତ ସମାନ
ରୂପ ରଂଗ ଭିନ୍ନ ଭିନ୍ନ
ପଶୁ ପକ୍ଷୀ ଠାରୁ ଆସନ ଉଚ୍ଚରେ
ଯେଣୁ ଅଛି ବୁଦ୍ଧିଜ୍ଞାନ ।

ଆମ ଦରକାରୀ ସକଳ ସଂପଦ
ଈଶ୍ୱରଙ୍କ ମହାଦାନ
ତାଙ୍କରି ଚାଇଜେ ସଭିଏଁ ସମାନ
କେହି ନୁହେଁ ବଡ଼ ସାନ ।



ଜାତି ଧର୍ମ ଭାଷା ଗଢ଼ିଛି ମଣିଷ
ଭୁଲି ଯାଇ ଶାନ୍ତି ପ୍ରୀତି
ଏ ବିଶ୍ୱ ଆମରି ଆସ ମିଳିମିଶି
ଗଢ଼ିବା ମାନବ ଜାତି ।

***

# ବୈକୁଣ୍ଠ ସମାନ ଘର



ବୈକୁଣ୍ଠପୁର ଯାହାକୁ କୁହ ବାରବାର
ସେ ନୁହେଁ ଅଦେଖା ଜାଗା ଅଟେ ଆମଘର
ସଦା ପରିଚିତ,
ଜୀବନ୍ତ ଦେବତା ବସି କରୁଛନ୍ତି ହିତ ।



ଘର ନୁହେଁ ମନ୍ଦିର ସେ ଦିଅଁ ପିତାମାତା
ଚଳନ୍ତି ପ୍ରତିମା ବସି ବୋହିଛନ୍ତି ଚିନ୍ତା
ପାଶେ ସଦା ରହି,
ଦେଖାନ୍ତି ମଙ୍ଗଳ ପଥ, ସବୁ ଦୁଃଖ ସହି ।



ଏପରି ମନ୍ଦିର କାହିଁ ମିଳିବାର ନାହିଁ
ଦୁନିଆର ସବୁ ସୁଖ ଭରା ଅଛି ତହିଁ
ଆମେ ସେବାକାରୀ,
ପାଳୁଥିଲେ ନିଜ ଧର୍ମ, ଯିବା ନାହିଁ ହାରି ।



ଯେଉଁ ଘରେ ହସଖୁସି ରହିଥାଏ ଭରି
ଯେତେ ଯାହା ଆସୁ ଝଡ଼ ନିଏ ସବୁ ହରି
ଆମେ ଭାଗ୍ୟବାନ,
ପିତାମାତା ପରିଜନ, ଈଶ୍ୱରଙ୍କ ଦାନ ।

***

# କାଉ

କା' କା' କା' ରାବଇ କାଉ
ରଙ୍ଗଟି ତା'ର କଳା,
ପ୍ରକୃତି ହିତେ ଗଢ଼ିଛି ବିଭୁ
ବୁଦ୍ଧିଟି ତା'ର ଧଳା ।





ରାତି ପାହିଲେ, ଚାଳରେ ବସି
ରାବିଲେ କା' କା'
ବାସି ପାଇଟି କରି ବସଇ
ସହଳେ ଉଠି ମା' ।



ପକ୍ଷୀ ହେଲେ ବି ପାଳନ କରେ
ନିଜ ଜାତିର ଧର୍ମ
ମନରେ ନାହି ଗରବ ତା'ର
କରଇ ନିଜ କର୍ମ ।



ନିଜକୁ ଭାବେ ଝାଡୁଦାର ସେ
ମନରେ ଘୃଣା ନାହିଁ,
କରେ ସଫାଇ ଆମରି ଭୂଇଁ
ପଚାସଡ଼ାକୁ ଖାଇ ।



ପରିବେଶର ଅଟଇ ବଂଧୁ
ବାଛି ନେଇଛି ସେବା
ଆସରେ ପିଲେ ନିତି ସକାଳୁ
ଚୁଡ଼ା ଚାଉଳ ଦେବା ।



ଶିଖ ଗଛରେ କରନ୍ତି ବସା
ଗଛ କାଟିବା ନାହିଁ,
ବଂଶ ବଢ଼ିଲେ କରିବେ ସେବା
ଆମରି ହିତ ପାଇଁ ।

***

# ଜଙ୍ଗଲ ବଞ୍ଚିଲେ ଆମେ ବଞ୍ଚିବା



ନାଲି ପେଁ ପେଁ ବାଜିଲା ତୁରୀ
ବଜାରେ ବଜା ଢୋଲ ମହୁରୀ
ରାଜା ପୁଅ ବାହାଘର,
ପଶୁପକ୍ଷୀଙ୍କର ଆନନ୍ଦ ନ ସରେ
ଜଙ୍ଗଲଟା ଭରପୂର ।



ବାଘ ରାଜାଙ୍କର ଆଦେଶ ମାନି
ହୁଳହୁଳୀଦିଏ କୋଇଲି ନାନୀ
କୁମ୍ଭାଟୁଆ ଗାଏ ଗୀତ,
ମୟୂର ମୟୂରୀ ନାଚନ୍ତି ବୁଲି,
ସଭିଏ ସଭିଙ୍କ ମିତ ।



ବିଲୁଆ ବାରିକ ଭାଲୁ ନାହାକ
ଚନ୍ଦନ ବୋଲୁଛି ବୁଲି ଡାହୁକ
ମାଙ୍କଡ଼ ବ୍ରାହ୍ମଣ ବେଶ,
ହାତୀ ଉପରେ ଭାଲୁ ମନ୍ତିରୀ
ବସିକି ମୋଡ଼େ ନିଶ ।



ହରିଣ ଠେକୁଆ ଆସିଲେ ଧାଇଁ
କହିଲେ ରାଜାକୁ ବିନୟ ହୋଇ
ଆଉ ନ ମିଳିବ ଦାନା,
ଆମ ଜଙ୍ଗଲକୁ କାଟନ୍ତି ମଣିଷ
ବସାଇବେ କାରଖାନା ।



ବାଘରାଜା ଶୁଣି ଦେଲେ ଆଦେଶ
ଜଙ୍ଗଲକୁ ଯିଏ କରଇ ଧ୍ୱଂସ
ଶୀଘ୍ର ଆଣ ତାକୁ ଧରି
ବିଚାର କରିଲି ଦଣ୍ଡ ତାହାପାଇଁ
ଜେଲ୍‌ରେ ଦିଅ ଭରି ।





ଜଙ୍ଗଲ ରହିଲେ ଦେଶ ହସିବ
ଆମ ପରିବେଶ ସୁସ୍ଥ ରହିବ
ବେଳ ଥାଉ ବୋଲ ମାନ,
ଗଛନ କାଟିକି ଗଛ ଲଗାଇବା
ସଭିଙ୍କର ହେଉ ଜ୍ଞାନ

***

# ଲାଗଇ ମିଠା ମିଠା

ସୁଲୁସୁଲିଆ ମହୁଲି ବାଆ
ଲାଗଇ ମିଠା ମିଠା,
ଆହୁରି ମିଠା ଶୁଣିବା ପାଇଁ
ଅଜା ଆଈଙ୍କ ଥଟ୍ଟା ।

ଖରାଦିନକୁ ଦହି ପଖାଳ
କାକୁଡ଼ି କଞ୍ଚା ଲଙ୍କା,
ଦୂର ଜାଗାକୁ କରିଲେ ମନ
ପାଖରେ ଥିବ ଟଙ୍କା ।

ବରଷା ସଂଜେ ପାଟି ସୁଆଦ
ଗରମ ମୁଢ଼ି ବରା,
ଦେହକୁ ହିତ ଶୀତ ସକାଳେ
ବାଜିଲେ ଟିକେ ଖରା ।





ବାହାଘରକୁ ବେଦୀ ସୁନ୍ଦର
ବାଜିଲେ ଶଂଖ ଢୋଲ
କରିବା କାମ ଶରଧା ମନେ
ଗୁରୁଜନଙ୍କ ବୋଲ ।





ବାରମାସରେ ତେର ପରବ
ମା' କରନ୍ତି ଓଷା
ଘରଟା ସାରା ବସନ୍ତି ଚହିଁ
ଭୋଗରେ ଥାଏ ଆଶା ।



ପଢ଼ାରେ ମନ ଧୀର ସଭାବ
ବଢ଼ଇ ବୁଦ୍ଧିଜ୍ଞାନ
ସବୁଠି ସେହି ପାଏ ଆଦର
ବଢ଼ଇ ଯଶମାନ ।

***

# ଭାରତ ମହାନ

ଆମେ ଭାଗ୍ୟବାନ ପିଲାରେ
ଓଡ଼ିଶା ରାଇଜେ ପାଇଛୁ ଜନମ
ଆମରି ତିରିଶି ଜିଲ୍ଲାରେ ।

ଓଡ଼ିଆ ଭାଷାରେ ଲେଖି ପଢ଼ିକରି
କଥା କହୁ ହସିହସି
ଆମକୁ ଆମେରେ କରୁଛୁ ଶାସନ
ଭୁବନେଶ୍ୱରରେ ବସି
ଆମରି ଦେଶ ଭାରତବର୍ଷ
ରାଜଧାନୀ ଆମ ଦିଲ୍ଲୀରେ ।



ଭାଷା ଧରମ ଜାତି ଅନେକ
ଗୋଟିଏ ମା'ର ପୁତ୍ର
ପର ଅପର ନାହିଁ ଆମରି
ଅହିଂସା ଆମ ମନ୍ତ୍ର ।
ବିଶ୍ୱରେ ଆମ ରହିଛି ଖ୍ୟାତି
ଆମେ ଭାରତୀୟ ବୋଲିରେ ।



ପଡ଼ୋଶୀ ଦେଶକୁ ବନ୍ଧୁ ବୋଲି ଭାବୁ
ମଙ୍ଗଳ କାମନା କରି
ବିପଦ ଆପଦେ ପହଞ୍ଚି ଯାଉଛୁ
ନିଜର ସମ୍ବଳ ଧରି
ବନ୍ଧୁତାରୁ ଭୁଲି ବଇରୀ ସାଜିଲେ
ଜବାବ ଦେଉଛୁ ଗୁଳିରେ ।

କୃଷକ ଶ୍ରମିକ ଦିନ ମଜୁରୀଆ
ଆମ ସଇନିକ ଭାଇ
ଦେଶ ମା' ପାଇଁ କରୁଛନ୍ତି ହିତ
ପ୍ରଗତିର ଗୀତ ଗାଇ
ଭାରତ ମହାନ କରୁଛୁ ଗରବ
ତା କୋଳେ ଜନମ ନେଇରେ ।



***

# ଆସ ଯିବା ପାଠ ପଢ଼ି

ଝିଅ ବୋଲି ଆମେ ନ ମଣିବା ହୀନ
ପାଠ ପଢ଼ି ବଡ଼ ହୋଇ
ନିଜ ଗୋଡ଼େ ଆମେ ନିଜେ ଠିଆହେବା
ନ ରହିବା ଘରେ ଶୋଇ,
ଏ ଦେଶର ଝିଅ ଆମେ,
ଆମ ଶିକ୍ଷା ପାଇଁ ହୋଇଛି ତିଆରି
ବିଦ୍ୟାଳୟ ଗ୍ରାମେ ଗ୍ରାମେ ।



ପୁଅପିଲା ପରି ସବୁ କାମ କରି
ଦେଖାଇବା ଟାଣପଣ
ଦେଶ ବିଦେଶରେ ପ୍ରକାଶ କରିବା
ଛପି ଥିବା ଆମ ଗୁଣ,
ଆସଯିବା ପାଠ ପଢ଼ି,
ବାପା ମା'ଙ୍କର ବୋଝ ନ ହୋଇବା
ଆମ ଭବିଷ୍ୟତ ଗଢ଼ି ।



ଝାଡ଼ୁ ବଦଳରେ ଧରିବା କଲମ
ଆମ ଅଧିକାର ପଢ଼ା
କିଏ କହେ ଆମେ ଅବଳା ଦୁର୍ବଳା
ଲୁହାସମ ଦେହ ଗଢ଼ା
ନ ରହିବା ଅପାଠୋଇ,
ପୂରବ କଳଙ୍କ ଯେତେ ଯାହା ଅଛି
ପାଠ ପଢ଼ି ଦେବା ଧୋଇ ।

***



## ପଦେ କଥା

କବିବନ୍ଧୁ ଶ୍ରୀ ତ୍ରିଲୋଚନ ମଥାନ ଓଡ଼ିଶା ଶିଶୁ ସାହିତ୍ୟ ଜଗତରେ ଏକ ପରିଚିତ ନାମ। ତାଙ୍କ ରଚିତ **କବିତା କହୁଛି କଥା** ଏକା ନିଃଶ୍ୱାସରେ ପଢ଼ି ହେଲା ଭଳି ଶିଶୁ-କିଶୋର ମନୋରଂଜନଧର୍ମୀ କବିତା ପୁସ୍ତକଟିଏ। କ୍ଷୁଦ୍ର କ୍ଷୁଦ୍ର କବିତା ମଧ୍ୟରେ ଅନେକ କଥା ଖୁନ୍ଦି ହୋଇରହିଛି ଯେମିତି ବିନ୍ଦୁ ଭିତରେ ସିନ୍ଧୁ ଦର୍ଶନ କଲାପରି! ଆଜିର ଯନ୍ତ୍ରଣା ଜର୍ଜରିତ ସମାଜରେ ମଣିଷ ଜୀବନ ଦୁର୍ବିସହ ହୋଇପଡ଼ିଛି। ପରିବେଶ ବିବର୍ଣ୍ଣ ହୋଇଛି। ପରିବେଶ ବନ୍ଧୁ - ଚିଲ, ଶାଗୁଣା, କୁଆ, ବିଲୁଆ, କୁକୁର ଇତ୍ୟାଦି ପଶୁ-ପକ୍ଷୀ କ୍ରମଶଃ ଧରାପୃଷ୍ଠରୁ ନିଶ୍ଚିହ୍ନ ହୋଇଯାଉଛନ୍ତି। ପ୍ରଗତି ପାଇଁ ଶିଳ୍ପ ଏକାନ୍ତ ଆବଶ୍ୟକ ମାତ୍ର କୃଷି ଯେ ଆମର ପ୍ରଧାନ ସଂପଦ, ଏକଥାକୁ ଆମେ ଭୁଲିଯାଉଛେ। ନୀରସ ଜୀବନକୁ ସରସ ସୁନ୍ଦର କରିବାକୁ ବୃଦ୍ଧ-ବୃଦ୍ଧାମାନଙ୍କର ମଜାଳିଆ ଗପ ଓ ଥଟ୍ଟାମଜା ଏକାନ୍ତ ଆବଶ୍ୟକ। ସେମାନଙ୍କୁ ସମାଜରେ ଯଥୋଚିତ ସମ୍ମାନ ପ୍ରଦର୍ଶନ କରାଯିବା ଉଚିତ। କନ୍ୟା ସନ୍ତାନଙ୍କୁ ହତାଦର କରାଯିବା ଉଚିତ ନୁହେଁ। ସମାଜକୁ ସୁନ୍ଦର କରି ଗଢ଼ି-ତୋଳିବାକୁ ଉପଦେଶ ଛଳରେ କବି ଅନେକ କଥା କହିଛନ୍ତି। ଲେଖାଗୁଡ଼ିକ ସରଳ, ତରଳ ଭାଷା ସହିତ ଛବିଳ ହୋଇଥିବାରୁ ଅତ୍ୟନ୍ତ ଆକର୍ଷଣୀୟ ହୋଇଛି। ଏହା ଶିଶୁ, କିଶୋର ଓ ସମାଜର ସବୁ ସ୍ତରର ପାଠକଙ୍କ ଦ୍ୱାରା ଆଦୃତ ହେବ - ଏହା ମୋର ଦୃଢ଼ ବିଶ୍ୱାସ। କବି ବନ୍ଧୁଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ।

ତା.୨୫.୦୫.୨୦୦୮

**ବିଦ୍ୟାଧର ବାରିକ୍**
ସଭାପତି
ଇସ୍ପାତ ସାହିତ୍ୟ ସଂସଦ
ରାଉରକେଲା